# ଶରଦ ରାହାସ



ଚିକିଟୀ ଅଧୀଶ୍ୱର
**ଶ୍ରୀ ବିଶ୍ୱମ୍ଭର ରାଜେନ୍ଦ୍ରଦେବଙ୍କ**
ପ୍ରଣୀତ

ପ୍ରଥମ ମୁଦ୍ରଣ—୧୯୫୮

ପ୍ରକାଶକ:
**ଓଡ଼ିଶା ସଙ୍ଗୀତ ନାଟକ ଏକାଡ଼େମୀ**
ନଉକାପିଠାଲ୍, ଭୁବନେଶ୍ୱର

ମୂଲ୍ୟ—ପଚାଶ ନୂଆ ପଇସା



ଶ୍ଳୋକ

କାଲାହିବକ୍ତ୍ରବଲଦ୍ରସନାଗ୍ରଜାଗ୍ରଦ୍-
ଗୋପୀଦୃଗଞ୍ଚଲଚମତ୍କୃତିବଦ୍ଧମର୍ମା ।
ଶର୍ମାଦଶଙ୍କକୂଟକୁଞ୍ଚିତ ଲୋଚନାନ୍ତ
ସଞ୍ଚାର ଚୂର୍ଣ୍ଣିତସଖୀହୃଦୟୋ ମୁକୁନ୍ଦଃ ॥

(ଅର୍ଥ)

କାଳସର୍ପର ମୁଖରେ ଥିବା ପ୍ରଖରତର ରସନାର ଅଗ୍ରଭାଗ ପରି ଅତି ଚଞ୍ଚଳ ହୋଇଥିବା ଗୋପୀମାନଙ୍କର ନେତ୍ରପ୍ରାନ୍ତଦ୍ୱାରା ଯାହାଙ୍କର ମର୍ମ ବନ୍ଧ ହୋଇଛି ଏବଂ ଲଲୁଆରଙ୍ଗ ଓ ଦୃମେଇବା ଭଳି ଦିଶୁଥିବା ନେତ୍ରଚାହାଣିଦ୍ୱାରା ସଖୀମାନଙ୍କର ଅନ୍ତମାନଙ୍କୁ ଚୂନା କରୁଛନ୍ତି ଯେ କୃଷ୍ଣ, ସେ ସୁଖ ଶାନ୍ତରେ ରଖନ୍ତୁ ।



ବ୍ରହ୍ମାଦ ଜୟସଂରୁଢ ଦର୍ପକନ୍ଦର୍ପ ଦର୍ପହା
ଜୟତି ଶ୍ରୀପତି ର୍ଗୋପୀରାସମଣ୍ଡଳମଣ୍ଡନଃ ।

ଭଗବାନପି ତା ରାତ୍ରୀଃ ଶରଦୋତ୍ଫୁଲ୍ଲ ମଲ୍ଲିକାଃ
ବୀକ୍ଷ୍ୟ ରନ୍ତୁଂ ମନଶ୍ଚକ୍ରେ ଯୋଗମାୟାମୁପାଶ୍ରିତଃ ॥

ତଦୋଡୁରାଜଃ କକୁଭଃ କରୈର୍ମୁଖଂ
ପ୍ରାଚ୍ୟା ବିଲିମ୍ପନ୍ନରୁଣେନ ଶନ୍ତମୈଃ ।

ସ ଚର୍ଷଣୀନାମୁଦଗାଚ୍ଛୁଚୋ ମୃଜନ୍
ପ୍ରିୟଃ ପ୍ରିୟାୟା ଇବ ଦୀର୍ଘଦର୍ଶନଃ ॥

ଦୃଷ୍ଟ୍ବା କୁମୁଦ୍ୱନ୍ତମଖଣ୍ଡମଣ୍ଡଳଂ
ରମାନନାଭଂ ନବକୁଙ୍କୁମାରୁଣମ୍ ।

ବନଂ ଚ ତତ୍କୋମଳଗୋଭିରଞ୍ଜିତଂ
ଜଗୌ କଳଂ ବାମଦୃଶାଂ ମନୋହରମ୍ ॥

ନିଶମ୍ୟ ଗୀତଂ ତଦନଙ୍ଗବର୍ଦ୍ଧନଂ
ବ୍ରଜସ୍ତ୍ରିୟଃ କୃଷ୍ଣଗୃହୀତ ମାନସାଃ ।

ଆଜଗ୍ମୁରନ୍ୟୋନ୍ୟ ମଲକ୍ଷିତୋଦ୍ୟମାଃ
ସ ଯତ୍ର କାନ୍ତୋ ଜବଲୋଲକୁଣ୍ଡଳାଃ ॥

ଗାହାକ—

(ରାଗ—କେଦାର)

(କି କରମ କଲି ତେଜି ଯା ରହିଲି—ପ୍ରଭୃତି)

ପରୀକ୍ଷିତ ରାଜା ଯେନ ଦେଇ ମନ୍ତ୍ରା
ଶରଦ ସମୟ ଘଟିଲା ହେ । ପଦ ।

କଳରୁନ୍ତ ଜାତ ହେଲା ଅବିରତ
ଜଳରୁ କଳୁଷ ଛୁଟିଲା ହେ
ଦିଶୁଁ ଚନ୍ଦ୍ର ଉଠିଲା କୁମୁଦ ଆମୋଦ
କି ସୁନ୍ଦର ହୋଇ ଫୁଟିଲା ହେ । ୧ ।

କରବୀର ମଲ୍ଲୀ ଚମ୍ପା ନବମାଳି
ମନ୍ଦାର ଯତନେ ଛୁଟିଲା ହେ
ସମାନ ବିମ୍ବରେ ଶଶାଙ୍କ ଅମ୍ବରେ
ରମା ମୁଖଛଟା ଲୁଟିଲା ହେ । ୨ ।

ନଳିନୀ ଭିତରେ ଝିଲି ନିରନ୍ତରେ
ଅଳି ମହାମତେ ରଟିଲା ହେ
କଦନ ଦେବାକୁ ଯୁବତୀ ଯୁବାଙ୍କୁ
ମଦନ କେବଳ ଯୋଟିଲା ହେ । ୩ ।

କରିବାକୁ ରାସ ଉତ୍ସବ ବିଳାସ
ହରିଙ୍କ ମାନସ ହଟିଲା ହେ
ମୁରଲୀରେ ରସି ଡାକିଲେ ଆଶ୍ୱାସି
ରାଜଇନ୍ଦ୍ର ସେବା ଖଟିଲା ହେ । ୪ ।

ଶ୍ରୀକୃଷ୍ଣ—

(ବଉଳବାଣି—ପ୍ରଭ)

ଆସ ରେ ଚମ୍ପକଲତା ଲଳତା ବିଶାଖା
ରଙ୍ଗଦେବୀ ତୁଙ୍ଗବିଦ୍ୟା ରେ ସୁଦେବୀ ଚିତ୍ରା ଇନ୍ଦୁଲେଖା ରେ । ୧ ।
ମୋହୁଛି ମନକୁ ସୁଧାମୟୂଖ ମାଧୁରୀ
ଦହୁଛି ମଳୟାନିଳ ରେ ମୋ ଧନ ଖେଳାଇ ବଲ୍ଲରୀ ରେ । ୨ ।
ଫୁଟି ମନ ମୋହୁଛନ୍ତି କେତେ ନବମାଲି
ଚୋଳବ ପରି ମଜାକରେ ମୋ ଧନ ବନଯାକ ବୁଲି ରେ । ୩ ।
ଯମୁନା ବନେ ମଞ୍ଜୁଳ କଇରବ ପୁଞ୍ଜେ
କଲେ ମନ ମଜ୍ଜି ଯିବା ରେ ମୋ ଧନ କୁତୂହଳେ କୁଞ୍ଜେ । ୪ ।
ରାଜଇନ୍ଦ୍ର ବୋଲେ ବଂଶୀ ନିନାଦ ଶୁଣିଲେ
ଭୁଲି ନଯିବ କା ମନ ହେ ସେକାଳେ କୁଳବଧୂ ହେଲେ । ୫ ।

ରାଧାଙ୍କ—

(ଶୁରୁ ଚନ୍ଦ୍ରକ୍ରୀଡ଼ାରେ—ପ୍ରଭ)

ଶୁଣ ହେ କୁରୁ ରାଜନ
ମୃଦୁମୟ ବଂଶୀସ୍ୱନ
ବ୍ରଜ କଳାକେଶୀ ଶ୍ରୁତିବଳେ ପଶି
ହରିନେଲ ମନ । ୧ ।
କାମ ମନ୍ଦର ଅମଳେ
ବାଳାକୁଳ ଘାରି ହେଲେ
ମଦନ ବିଷୟ ପାଶୋରି ସେ ଲୟ
ତହିଁ ଲଗାଇଲେ । ୨ ।

ସନ୍ଧ ଏପର ହେଲେ
କେ ସୁତକୁ ପାଶୋରିଲେ
କେ ଦଧିମନ୍ଥନ　　　　କେ ଅଙ୍ଗଭୂଷଣ
ବରଜି ଧାଇଁଲେ । ୩ ।

ମାର ବୋଲି କେଉଁ ବାଳା
କ୍ଷୀର ତଳେ ଢାଳିଦେଲା
ଚନ୍ଦ୍ରକୋଳ ମାଳା-　　　　ବିଳାସରେ ହେଲା
କରି କେ ଧାଇଁଲା । ୪ ।

ଦେଖି ତାଙ୍କ ପ୍ରିୟମାନେ
ବାଟ ଓଗାଳ ବନ୍ଧନେ
ଘଟିଲେ ଘରଣୀ　　　　ରାଜେନ୍ଦ୍ର ନୃପତି
ଶ୍ୟାମପ୍ରେମ ଘେନେ । ୫ ।

ଗୋପାଳଗଣ—

(ରାଗ ପାଇଗଲା ହେ ହାତ—ପ୍ରଭୃତି)

ମୋ ଧନ ରେ କୁନ୍ଦନକାନ୍ତି
କାମକଳା କମନୀୟ ମୂରତି
ବାମ ହୋଇ ମନେ　　　　ରସ ନା ଏ ବନେ
ଯାମକୁ ବହୁତ ହେଲାଣି ରାତି । ୧ ।

ରଙ୍କମନା ଏ କରେ ଆଜି
ଅଙ୍କ ମୋର ଦେଇ ବରଜି
ପଙ୍କ ନିଜକୁଳେ　　　　ଦେବାକୁ ଚପଳେ
କଙ୍କଣଶୋଭନ ନକର ରାଜି । ୨ ।

ବାହୁଦଣ୍ଡ ରେ ଜବାଅଧର
ବାହୁ ଡ଼ରେ ନମଣ୍ଡ ଧର
କାହ୍ନୁଁ ଏତେ ଗୁଣ ସମ୍ଭାଳିଲୁ ପୁଣ
ଗୃହୁଁ ନାହୁଁ କଲେ ହେଲେ ବନନ୍ତ । ୩ ।

ନାଟନ୍ଲେଲ ଖଞ୍ଜନାକ୍ଷୀଟି
ବାଟ ଭଙ୍ଗି ନ ପଲା ଫିଟି
ରାଟ ଶୁଣି ଯେବେ ଆଟକ କରିବେ
ଲଟସାର ହେବା ପାଟକ ଜାତ । ୪ ।

ରମାନାଥ ବ୍ରଜତରୁଣୀ
ନମାନ ସେ ପ୍ରିୟଙ୍କ ବାଣୀ
ଭ୍ରମାଇଁ ଘଟିଲେ ଗଜେନ୍ଦ୍ର ନାଶିଲେ
କମାଇଁ ଶ୍ୟାମ ସେବାକୁ ବପତ୍ତି । ୫ ।

ଗୋପୀଗଣ—

(ରାଗ—ଶଙ୍କରାଭରଣ)

(କପିରାଜନ ଶୁଣିମା ହେ—ପ୍ରଭୃ)

ଆଉ ମନା ନ କର ହେ
ଯାଉଛୁ ମୋ ଚନ୍ଦ୍ରମୁଖ
କାଉଚ ଅଙ୍କରେ ମଣ୍ଡିଥାଅ ଧୀରେ
ଆସୁଛୁ ନ ରଖ ଦୁଃଖ । ପଦ ।

ଆଜ ଧାଇଁଛନ୍ତ ବ୍ରଜରାଜ ଗଣ୍ଡ
ଲାଜ ଛେଜ ମନୁ ଦେଖ

ଖଣ୍ଡା ନାହିଁ ତୁମ୍ଭ କୃପାରୁ କଦମ୍ବ
ତୋଟାରୁ ଲଭିବ ସୁଖ । ୧ ।

ନ ଘେନ ଚାପର ତୁମ୍ଭେ ମୋର ଉର
ହୃଦୟୁ ପଞ୍ଚବଶିଖ
କହୁଛୁ ଜୁହାର ଆନ ନାରୀ ପର
ଅସତି କରି ନ ଲେଖ । ୨ ।

ମୋ ନବକିଶୋର ଅଛୁ ତ ଗୋଚର
ନବଘନଡଙ୍ଗିଆ ଓଖ
କାନ୍ଦିବ ଯେବେଟି ତାକୁ ବୋଧିବଟି
ଦଣ୍ଡେ କରି କୋଳ କାଖ । ୩ ।

ଯାଅ ସଦନରେ ଅଛି ଯତନରେ
ଦଧି ଦୁଧସର ରଖ
ବସି ଜଗିଥିବ କେତେବେଳେ ନେବ
ଯଶୋଦା ପିଲା ମୂରୁଖ । ୪ ।

ଗଲେ ହେଲେ ଜୀବ କେ କାହା ସ୍ୱଭାବ
ଛୁଇଁଲେ କଲେ ପରଖ
ଏକଥା ବହୁତ ହୋଇଛୁ ଜଗତ
ବୋଲେ ଗ୍ରାମ-ଶତମଖ । ୫ ।

ଗାହାକ—

(ବେଗରେ ଆସ ଗୋ—ପ୍ରଭୃ)

ସଜନ ! ଘେନ ହେ ରସ ମାନସ ମଜ୍ଜାଇ ବଳେ
ସୁଧାରୁ ବଳେ ଏ ସ୍ୱାଦୁ ବସୁଧା ତଳେ । ପଦ ।

ପଛାରେ ପ୍ରିୟଙ୍କୁ ସଖୀ          କଥାରେ ବଞ୍ଚାଇ ଦେଇ
ସଦନ ପାଶୋରି ଗଲେ ମଦନ ଭୋଳେ । ୧ ।

ବନଯାକ ଖୋଜି ଖୋଜି          ସ୍ୱନ ଶୁଭିବାରେ ହେଜି
କାଦମ୍ବଗମନା ହେଲେ କଦମ୍ବମୂଳେ । ୨ ।

କି ସୁନ୍ଦର ସେ ବଦନ          ଢଳୁଛି ବେନି ନୟନ
ଉତ୍ପଳ ପରି ଯୋଡ଼ିଏ ଖଞ୍ଜନ ଲୋଳେ । ୩ ।

ଜନମାଏଁ କେତେ ଶୋଭା          ବନମାଳା ଫୁଲଗଭା
ଚୂଳେ ଚନ୍ଦ୍ରକ ଚପଳ ନମାରୁଛି ହେଲେ । ୪ ।

ଚାହିଁ ମୋହନ ମୂରତି          କାହିଁ ହଜିଗଲା ଧୃତି
ମୁଖ ପୋତିଲେ ବାଳାଏ ଲାଜ ଆକୁଳେ । ୫ ।

ହସିଦେଇ ବଂଶୀଧର          ଭାଷିଲେ ମଧୁର ଗିର
ଚିନ୍ତିଲେ ରାଜେନ୍ଦ୍ର ତାଙ୍କ ପଦ ମଞ୍ଜୁଳେ । ୬ ।

ଶ୍ରୀକୃଷ୍ଣ—

( ଶ୍ୟାମନାଗର କେତେ ହଟିଆ ଗୋ—ପ୍ରଭୃତି )

କାହିଁକି ଆସିଲ ଗୋ ଘନ ବନକୁ
ନାହିଁ କି ହେଲେ ଟିକିଏ ଡର ଜୀବନକୁ ? । ପଦ ।

ଇନ୍ଦୁଲେଖା କୁନ୍ଦହାସି          ସତେ ତୁ କେତେ ସାହସୀ
ଅରଜିବା ପଉରଷ ବରଜି ମନକୁ । ୧ ।

ଦୂରେ ଦେଖିଦେଲେ ମୋତେ          ପୂରେ ଲୁଚୁଥାଉ କେତେ
ଆଜି ନ ଲାଗିଲା କି ଗୋ ଲାଜ ବଦନକୁ ? । ୨ ।

ଆଗୋ ଲଳିତା ବିଶାଖା ରଙ୍ଗଦେବୀ ଚନ୍ଦ୍ରଲେଖା
ସରଜିଲ ନଷ୍ଟେ ଅପକାରନ୍ତ ଧରାକୁ । ୩ ।

ଦେଖ ଦେବତାଙ୍କ ସ୍ଥାନ ପଡ଼ିବ ଯେବେ ନୟନ
ଜଳିଯିବ ବଳନ୍ତ ତ ଝଳରେ କନକୁ । ୪ ।

ଚମ୍ପକଲତା ଗୋ ତୁହ୍ନ କମ୍ପକୁ ହେଲେ ନ ବହ୍ନ
ଖଜବୁଡି ଏ ପାଷାଣ ବାଜି ଜଘନକୁ । ୫ ।

ଏ ଗିରେ ବାଳା ସକଳ ଖଡିଲେ ଶିଖଣ୍ଡିଚୂଳ
ହେଲ ଦରଶନ ରାଜଇନ୍ଦ୍ର ରାଜନକୁ । ୬ ।

ଗୋପୀଗଣ—
(ନାହିଁ ତୁମ୍ଭ ଶୁଭ ଏଡିକ ଗୋ—ପ୍ରଭୃ)

କଳା ଇନ୍ଦୀବର ମୂରନ୍ତ ହେ
ବାଳା ନେତ୍ର ନୀଳବରନ୍ତ ହେ । ପ୍ରଦ ।

କାହ୍ନିଁକ ଆସିଲ ବୋଲି ଯେ ଖିଣ୍ଡିଲ
ପେଟେ କୂଠ କର ଭରନ୍ତ ହେ । ୧ ।

ମଧୁର ମାଦକ ଖିଆଲ ବାଣୀ
ଶୁଣି ସୁଖୀ ହେବୁ ମନରେ ଗୁଣି
ଆସିଛୁ ସୁମନା ନ ଖିଙ୍ଗ କାମନା
ନାଶି ସୁତ ପନ୍ତ-ପୀରନ୍ତ ହେ । ୨ ।

ରାତ୍ତ ଆସି ଏବେ ହେଲନ ଅଧ
ହାନ୍ତି ହେ ନକର ନରାଶେ ସଧ
ହେ ଶିଖିଚୂଳିଆ ମଦନମେଳିଆ
ଦାସୀଙ୍କ ହେଲନ କରନ୍ତ ହେ । ୩ ।

ରସିକ-ମଣ୍ଡଳ-ମଣ୍ଡନ-ବାନା
ଉଡ଼ବାଠାରେ କରିଦେଇ ଚୂନା
ଲେଉଡ଼ବାର ଭଲ   ନୁହଇ ଛଇଲ
ନାରୀ ମାରିଦେବା କାରନ୍ତି ହେ । ୪ ।

ଏ ଗିରେ ଭଣିଲେ ନାଗରବର
ଗେଲେ ତାଙ୍କ ପଦ କରି ଜୁହାର
ରାଜଇନ୍ଦ୍ର ଦେବ   ଏ ରାସ ଉତ୍ସବ
ଗୀତ ହୋଇବାକୁ ସ୍ଫୁରନ୍ତି ହେ । ୫ ।

ଶ୍ରୀକୃଷ୍ଣ—

(ପଚ୍ଛର କେ ଆସିଛୁ ଏ ଜଗତକ—ପ୍ରତି)

ଧନ ଘନକେଶାମାନେ
ଯାଅ ଯାଅ ଘେନ ମୋର ବାଣୀ ଗୋ । ପଦ ।

ଗତ୍ତକର  କଦମ୍ବମୂଳ
ଅତ୍ତ ମୋତେ ହରୁଛି କାଳ
ମୁରଲୀ ବଜାଇ   କା'ନାମେ ମଜ୍ଜାଇ
କେବେହେଲେ ଡାକ ଆଣିନାହିଁ ରେ । ୧୦ ।

ତୁମ୍ଭେ ପରା ଧୀରା ବିବେକୀ
ତେଜିଦେଇ ନିଜ ପତିଙ୍କି
ଲଗାଇଛ ଏ କି   ମୋତେ ଦେଇ ସାକ୍ଷୀ
ଦଗାଦାର ଦାଗ ଜାଣିଜାଣି ରେ । ୨ ।

ଜାତି କୁଳ ସୁତ ଉପେକ୍ଷି
ରାତିରେ ଯେ ଆସିଲ ଦେଖି
ମାମୁଁ ମୋର କଂସ ଶୁଣିଲେ ଏ ରସ
ତୁମ୍ଭଙ୍କୁ କେବଳ ନେବ ଟାଣି ରେ । ୩ ।

ବୁଲି ବୁଲି ଦେଖ ବନକୁ
ତୋଳି ତୋଳି ନାନା ସୁନକୁ
ସୁଖ ସମ୍ପତ୍ତିରେ ହରଷମତିରେ
ମୁଖ ପଖାଳ ଯମୁନା ପାଣିରେ । ୪ ।

ଏ ବଚନେ ସକଳ ସଖୀ
ଭାଷିଲେ ସେ ବିରସ ବଖି
ରାଜଇନ୍ଦ୍ର ଚିତ୍ତ ମଜ୍ଜିଲା ନିରତ
କୃଷ୍ଣଚନ୍ଦ୍ର ପାଦପଦ୍ମ ଠାଣିରେ । ୫ ।

ଗୋପୀମାନେ—

(କରୁଣା ଯୁକ୍ତା ବାଦେରା—ପ୍ରଭୃ)

ମହାମୋହନ ଖିଆଲ ନୋହିଲା ଏ ଭଲ
ହରି ନେଲ ହୃଦୟରୁ କରୁଣା କରି କେ ଖାଲ । ପଦ ।

ଆସିଲୁ ବୋଲି ପାଶକୁ 'ଯା' ସିଲଦଅ 'ବାସକୁ'
ଚାହିଁବୁ କାହାର ମୁଖ ଯାଇ ବ୍ରଜପୁରେ କାଲି ? । ୧ ।

ଅନାଅଁ ହେ ବଂଶୀଧର ଘନାଘନ ବର୍ଣ୍ଣାକର
ତନୁଟିକି ଫୁଲଶରେ ଅତନୁ କଲ୍ପନ ଜାଲ । ୨ ।

ପରଷି ଭୋଜନ ବେଳେ ଭରସି ଭୁଞ୍ଜିବା ବେଳେ
ହରଷିତ ହୋଇ ତହିଁ ବରଷି ଦେବାର ବାଳ । ୩ ।

ଥାଉ ଏହ ଅବଧାନ ଯାଉଛୁ ଯାଉଛୁ ଧନ
ଆଉ ସହ ନପାରୁ ଏ ଠାଉକଆ ଗିର ଭଲ । ୪ ।

ରାଜଇନ୍ଦ୍ର ଦେବ କହେ ହରଣୀ ବଶ କ ନୋହେ
ଲଗିଲେ ଶ୍ୟାମ ବନସ୍ତୁ ରସ କଉତୁକ ଜାଲ ? । ୫ ।

ଗାହାକ—
(ବୋଲେ ଲକ୍ଷ୍ମଣ ଶୁଣ ଗୃପଧର—ପ୍ରଭ)

ଶୁଣ ହେ ନୃପତିକୁଳ ଚନ୍ଦ୍ରମା ଖୁଣ ନ ଥିବାର ଗୁଣବନ୍ତ ବାମା
ଭଣି ଏମନ୍ତ ଭାଷ
ପୁଣି ବକଳେ ଉଡ଼ଲା ସାହସ । ୧ ।

ବୁହାଇ ନୟନୁ ଲୋତକଧାର ଧୂଆଇଲେ ଏକା କଜ୍ଜଳଗିର
ଧର ଚରଲେ ବସି
ହରବୃତ ଶରେ ହୋଇଲେ ଭୂଷି । ୨ ।

ବସନ ହୋଇଲା ଭାର ବଶେଷ ଶୁସନ କେବଳ ମଣିଲେ ବଷ
ଶଶିକରଣମାଳା
ଇଷିତରେ ତାଙ୍କୁ କ ଦଣ୍ଡ ଦେଲା । ୩ ।

କାହାର ଆଉ ନ ରହଲା ଚେତା ବାହାରଲା ନାହିଁ ବଦନୁ କଥା
ପଡ଼ଗଲେ ମହୀରେ
ଝଡ଼ଲା ବାସି କୁସୁମ ପ୍ରକାରେ । ୪ ।

ଅନାଇଁ ଏ ଶାନ୍ତ ଶିଖଣ୍ଡଧର    ମନାଇଁ ଭାଷିଲେ ମଧୁର ଗିର
ରାଜଇନ୍ଦୁ ରାଜନ
ହାଜର ହେବାକୁ ହେଲେ ଭାଜନ । ୫ ।

ଶ୍ରୀକୃଷ୍ଣ—

(ଶ୍ରୀରାମ ନାଗ—ପ୍ରଭ୍ତ)

ରେ ରସାଳସା !
ଛାଡ଼ ମୋ ବନ୍ଧୁ ଆଡ଼ରୁଷା । ପଦ ।

କଥାକୁ ପିନା ସହି    ଏପରି ଦେଲ କହି
ଧୂଳି ଧୂସର ଧରାବସା ରେ । ୧ ।

ବଳ ଯା ଠାରେ ଥାଇ    ତାକୁ କ ନ ବୋଲଇ
ଏଥିରେ ଏକା ଏଡ଼େ ରୁଷା ରେ । ୨ ।

ଏ ବ୍ରଜଭୁବନରେ    ବୋଲନ୍ତି ପରା ନରେ
ମୁଁ ତୁମ୍ଭ ପିଲାଙ୍କୁ ପୋଷା ରେ । ୩ ।

ମୋ ଧନ ହେଲ ହେଲ    ମାନୁନାହିଁ ଛଇଲ
ଗଣ୍ଡେ କରକମଳଠେସା ରେ । ୪ ।

ଆସ ଆସ ଅଙ୍କକୁ    ମିଳିଯାଉ ରଙ୍କକୁ
ଅନଙ୍ଗ ସଙ୍ଗର ପ୍ରଶଂସା ରେ । ୫ ।

ଶୁଣି ଏ ମୃଦୁ ଗିର    ସହି ଦେଲେ ଉତ୍ତର
ଶ୍ୟାମଙ୍କୁ ବୋଲେ ରାଜବୃଷା ରେ । ୬ ।

ଗୋପୀମାନେ—

(ସରଗଲ୍ଲ ଶିରଷାଙ୍ଗୀ—ପ୍ରଭ)

ହେ ଯୁବରାଜା ବୁଝୁଥିଲ ପର ମଜ୍ଜା । ପଦ ।

ଟାଣି ଆଣିଲ ଏ ବନକୁ ରାତରେ
ଛୁଣି ହୃଦୟରୁ ଲଜ୍ଜା,
ଘାତକ ଝୁମ୍ବର ବଜେଲ ତ ମୁରଲୀ
ପ୍ରୀତିଗୀତଲଗା ବଜା ଯେ । ୧ ।
ଖଣ୍ଡଦରପଣ ଗଣ୍ଡଝଲ ଆହେ
ତୁଣ୍ଡ ହୋଇ ତରୁଣୀ ଯା
ମୁଣ୍ଡ ମାର ପଦେ ଗୁଣ୍ଡ ହେଲେ ହେଲେ
କଲ କେତେ ତୁଣ୍ଡବଜା । ୨ ।
ଘରବୁଡ଼ା ରୁଚ ବଚନ ତ ଶାଚ
ସରବୁଡ଼ା ମୃଦୁ ଖଜା
ଚଖାଇ ଅଳପ ରଖାଇ ନଦେଇ
ଦେଖାଇ ପଛେ ଭାନୁଜା । ୩ ।
ମୁଲକମୋହ୍ନୀ ଇଙ୍ଗିତୁ ଶ୍ୟାମ
ତନୁ ହୋଇଲ ଗଜା
କର ଧରି ଗେଲେ କହ୍ନଗଲେ ବୋଲେ
ନରେଶ ବଡ଼ୋଜା । ୪ ।

ଶ୍ରୀକୃଷ୍ଣ—

କୁନ୍ଦଦଶନା ମନ୍ଦହସନା ନୀଳବସନା । ପଦ ।

ଛୁଇଁଅନା କୁସୁମ ପରି ଫୁଟିଛୁ ଗୁହାଁ ଜରି
ନେବଟି ଧୂତଖୁରି କରେ ମୂଲ୍ୟନା । ୧ ।

ରାଧା—

ହେ ଶ୍ୟାମ ଗୋର ମୁରଲୀଧର ଦୁଃଖପାଶୋର । ପଦ ।

ନାଗେଶ୍ୱର କଳକା ଆଗେ ମଞ୍ଜୁଳ ଦଶେ ମାଟେ
ଲଳିତା ଅନୁରାଗେ ନୟନକାର । ୨ ।

କୁନ୍ଦଲତା, ଶ୍ରୀକୃଷ୍ଣ—

ଖଣ୍ଡି ଛୁ କଣଲସ୍ଥ ମଣ୍ଡିଦେବକ କେଶେ
ଚଣ୍ଡି ଛାମଣି ହାରଦଣ୍ଡି ଆଉ ହଲାନା । ୩ ।

ରାଧା—

ହେ ଶ୍ୟାମ ମନୁ ନଯାଏ ତୁମ୍ଭ ତନୁ ସମ ଅତସି ବନୁ
ତୋଳଛୁ ନଅ ଧନଟି ହୃଦୟହାର । ୪ ।

କୁନ୍ଦଲତା, ଶ୍ରୀକୃଷ୍ଣ—

ଗୀତଗାନେ ମୋ ପ୍ରାଣମିତ ନଆଳ ତୋଳ
ନତମ୍ବ ବମ୍ବ ଗୃଳ ଚତ୍ର ମୋର ଭୁଲାନା । ୫ ।

ରାଧା—

ହେ ଶ୍ୟାମ ହାତହେ ଏ ସୁନ୍ଦର ଗୁଚ୍ଛକ ଭଲ ମାନେ
ଜାଣ କୁସୁମମାଳା ରଚକ ନେବକାର । ୬ ।

ରସ ରଚଲେ ରାଜ ବାସବ ବୋଲେ ପ୍ରତାପଷ
ସେ କଲେ ଶ୍ୟାମେ ହାସ କର ରଚନା । ୭ ।

ରାଧା—

(ଠେକ ଗୃହାଁ ତୁ ମନ—ପ୍ରଭ)

ଆହେ କଳାକଶୋର ମୁରଲୀଧର
କୁନ୍ଦରଦନ-ଦୁନ୍ଦ-ଚନ୍ଦନ ବ୍ରଜପୁର ସୁନ୍ଦରବର
ନୀଳନନ୍ଦନ ଘନ ତନୁ । ପଦ ।

କାହିଁ ମୋ ହାର ନୂଆ ଛଇଲ ନାହିଁ ନାହିଁ ମା ସତେ ଏ କ ଗେଲ
ବାଜିବ ଯେବେ ମୋର ରଞ୍ଜିବ ପଦ ମୁଦ୍ରି
ଭଜିବ ସବୁ ସୁଖ ପାଜ ମଦନ ରଣେ । ୧ ।

ଶ୍ରୀକୃଷ୍ଣ—

ଆରେ ମନମୋହନା ଆଜ କହନା
ପଙ୍କଜ ଦରପଣ ରଙ୍କବହୀନ
ଶଶଅଙ୍କବଦନ ଶଙ୍କର ଖେଦନଧି । ପଦ ।

ଗଣ୍ଡେ ଦଅ ତୁ ରଦନ ଚହ୍ନ
ମଣ୍ଡେ ତୋ ତନୁ ନଖ ଲାଞ୍ଛନ
ହାରେ କ ଅଛୁ ଶରଧା ରେ କୁଚକୁ ଲଦ ଧାରେ
ଅଧରମଧୁର ରେ ଦେଇ ତୁ ତୋଷ । ୨ ।

ରାଧା—

ପାନ କରୁ ନନଅ ମୋହର
ଆନ ଅଛୁ ଶିଖଣ୍ଡଶେଖର
ଯାବକ ଦ୍ରବ ରସ ହାବ କୁତୁକ ଏହ ଲଭ
ହେଟି ମନେ ଭାବ ରସିକାମଣି । ୩ ।

ଶ୍ରୀକୃଷ୍ଣ—

ଝରି ଝୁଲାଇ ଧରିମଣ୍ଡନା
ପରିପନ୍ତ କର ମୋ କାମନା
ନାଟରସରେ ଚତୁ     ପାଟବ ମୋତ ସୁର-
ରାଟ ପଦବୀ ହରୁ ହାଟକଗୋଷ୍ଠୀ ମୋର । ୪ ।

ଆରେ ବୋଲେ ରାଜନ
କଲେ ଏପରି ରାସ ବିଧାନ
ଜାଗର ବଶେ ଅନୁ-     ରାଗରେ ସୁରଜନୀ
ଭାଗକୁ ନେଲେ ରସସାଗରେ ମଜ୍ଜି ସେ । ୫ ।

ଗାହାକ—

(ଉଠିଲେ ହୋଇ ପ୍ରମୋଦ—ପ୍ରଭୃ)

ହେ ନରେଶକୁଳ ମୋଣ୍ଡ     ଯେନ ଏ ଚରିତ ଗୀତ
ସେ ନବସୁଧାରୁ ବଳେ ମଧୁର ଅତି
ହେଇ ମତ୍ତ । ୧ ।

ଲଗିଛି ରାସ ବିଳାସ     ଗୋପୀନାହିଁ କା ମାନସ
ବୃନ୍ଦାବଣି ଧରି ହରି ହେଲେ ଅଦୃଶା
ଏକାଳେ ଯେ । ୨ ।

ବାଳା ସଙ୍ଗେ ବୁଲି ବନେ     ଆଳାପି କୁତୁକମନେ
କଳାପଚୂଳିଆ କଲେ ବେଣ ବହନେ
ଠାବେ ଠାବେ । ୩ ।

ଯେତେକ ତା ଭାବ ଥିଲା ସେ ତରୁଣୀମଣି ଦେଲା
ଶ୍ୟାମଙ୍କ କାମକାମନା ସବୁ ପୂରିଲା
ଯତନେ ସେ । ୪ ।

ପୁଣି ଯାଉ ଖଣ୍ଡେ ଦୂରେ ମଣିଲା ଗର୍ବ ମନରେ
କହିଲା ରାଜେନ୍ଦ୍ର ଭଣେ ଶ୍ୟାମ ଗାନରେ
ହରଷରେ । ୫ ।

ବୃନ୍ଦା—

(ରାଗ—ପୁନ୍ନାଗ)

ହେ ମୋହନ ଚାଲି ମୁଁ ନପାରେ
ହାଲିଆ ହୋଇ କ୍ଷପାରେ । ପଦ ।

ସୁଭଗିମାଗର୍ବ ହେଲ ବ୍ରଜ ସୁରୂପା ରେ
ଦେବାଙ୍କ କଟାକ୍ଷ ଖେଳା ବଳାସରୁ
ସେବଲ ଜଳଜପାରେ । ୧ ।
ରସିଗଲିନ ମୁଁ ଆସି ଖେଦ-ଅକୂପାରେ
କରବ କ ବଧି ଦଶୁନାହିଁ ବୁଦ୍ଧି
ତରିବାକୁ ଆଉ ପାରେ । ୨ ।
ଆସୁନାହିଁ ବୋଲିବାକୁ ଘଷଟି ନପାରେ
ଭଙ୍ଗୀରଙ୍ଗିଲ ହେ ଦଅ ଦଅ ସିଲ
ଅଙ୍ଗୀକାରକୁ କୃପାରେ । ୩ ।
ଏହ୍ୱଷଣି ଗରବ ସରବ ଏଥି ପାଁରେ
ରାଜଇନ୍ଦ୍ର ବୋଲେ ସେ ଶ୍ୟାମ ଭାଷିଲେ
କପଟ ରଖି ଅପାରେ । ୪ ।

ଶ୍ରୀକୃଷ୍ଣ—

(କଳାକେଶୀ ରେ ବାଳାମଉଳକ୍ଷାର—ପ୍ରଭ)

ଆସ ଆସ ରେ ଶ୍ୟାମ ଭ୍ରମରକେଶୀ
କାମକମନୀୟ କଳାବିଳାସୀ । ପଦ ।

ରଙ୍ଗଭୂତ ଅଧର ହେଲା
ଅଙ୍ଗଛଟା କାହିଁ ଲୁଚିଲା
ଫାଟିପଡ଼ ପଦ          କାଟିବନ ବନ୍ଧ
ଘାଟିଚାଲ ଶ୍ରମୁ ଭୂଲୁ ସାହସୀ । ୧ ।

ନବନୀତ କୋମଳ ବଲ୍ଲୀ
ଅବନୀରେ ନପାରୁ ଚାଲି
ଶୁଆଶାରୀ ପଢ଼ା          ସୁଆଦରେନା କ
ଉଆସମଣ୍ଡନା ନୂଆ ସୁହାସୀ । ୨ ।

ଗୃହୁଁ ଚୋର ବିକଳ ଚିତ୍ତ
କାହିଁ ହଜପାଉଛୁ ଧୂର୍ତ୍ତ
ଆହା ଧନ ମୋର          ଧୂନ୍ଧେ ବଜେ କର
ଯାହା ବୋଇଲେ ତୁ ଦେବୁ ତଳସି । ୩ ।

କଣ୍ଠୀରବ କଟିକ ଭଙ୍ଗ
ଗଣ୍ଡି କର ବାସ ନବାଢ଼
ଯିବା ଚାଲ ଚାଲ          ନାଗେଶ୍ୱର ଫୁଲ
ତକଆପକା କୁଞ୍ଜକୁ ସୁବାସି । ୪ ।

ମନେ ବୃନ୍ଦା ଭାଗ୍ୟ ମଣିଲା
ବନେ ରସିଯିବ ଭଣିଲା
ରାଜଇନ୍ଦ୍ର ଦେବ          ଏ ରାସ ଉତ୍ସବ
ବୋଲେ ଶ୍ୟାମଚନ୍ଦ୍ର ସେବା ମନାସି । ୫ ।

ରାଧିକା—

( ଗୃହିଁଲୁ ଆଜ ମୋ ଧନ—ପ୍ରଭୃ )

ଯେନ ହେ ନରେଶ ରସ ମାନସ ମଞ୍ଜାଇ । ପଦ ।

ଛଇଳ ମଣ୍ଡନ ମଣି କହୁ ଏ ଅମୃତ ବାଣୀ
ବହୁ ବନସୁ ସହାକ ଦେଲେ ସମଜାଇ । ୧ ।

ଜାଣି ଶ୍ୟାମ ଅଙ୍ଗୀକାର ଆଣି ମନେ ଗର୍ବ ତାର
ଭାଳିଲା ହେଲି ସୁମନା-ଶିର-ସୁନା-ଜାଈ । ୨ ।

ଏକାଳେ ମନମୋହନ ସ୍କନ୍ଧେ ଧର ବହନ
ଖଣ୍ଡେ ଦୂରେ ଛେଡ଼ି ଲୁଚିଗଲେ ବନେ ଯାଇ । ୩ ।

ଅନାଇଁଦେଲା ରସିକା କେ ନାହିଁ ହୋଇଲା ଏକା
କାହାର ହେଲେ କ ଚେତା ରହିବକ ନ ଯାଇ । ୪ ।

କାନ୍ଦିଲା ବିକଳେ ଅତି ବୋଲେ ରାଜ-ବଳାରାତି
ଲୋଡ଼ ଆଣିଲା ବିପତ୍ତି ମନକୁ ଖୋଜାଇ । ୫ ।

ବୃନ୍ଦା—

(ରାଗ—ବଙ୍ଗଳାଶ୍ରୀ)

ହେ କଳାକିଶୋର ମୋର ନୀଳମଣିମାଳା ହେ
କାହିଁ ବିଜେକଲ ବନେ କାଟିଦେଇ ଗଳା ହେ । ପଦ ।

କିକରିବ ଏବେ ରାସରସ ଲୀଳାନିଧି ହେ
ଆସ ଆସ ଆଉ କିଛୁ ଦିଶୁନାହିଁ ବୁଦ୍ଧି ହେ

ବାଇପର ହୋଇ ପଳାଏ ଧାଇଁ
ବାଇ ବେଣୁ ବାଟରେ ରଖ କହ୍ନାଇ
ବଞ୍ଚିବ କେହ୍ନ ସେ ନବ ଅବଳା
ମୁଞ୍ଚିଲ ଯେ ନନ୍ଦରତନବଳା । ୧ ।

ଆସିଲ ବୋଲି ଭ୍ରମର ସ୍ନେହେ ହୋଇ ବକା ହେ
ନାଶିଲ ସୁଖ ରାତ୍ରରେ କରି ମୋତେ ଏକା ହେ
ଦେଲ ଯେ ବ୍ରପତ୍ରି କୁଞ୍ଜବଳାସୀ
ଗେଲ କି ଏ ଗଲ ଉଠୁରୁ ଖସି
ଦେଖାଅ ମୁଖ ନରଖି ଗୋଳଆ
ଶ୍ୟାମ ମୂରତି ହେ ଜାମୁଡ଼ାଳଆ । ୨ ।

ଉଡ଼ଲ ଆସି ସାହସ ଲେଉ଼ ଲେଉ଼ ଛନ୍ଦେ ହେ
ଯୋଡ଼ଏ ହେଲେ ମୋ ଡ଼ାକ ନପଡ଼ଲ କାନେ ହେ
ଜହର କେ ହେଲେ ଦଅନ୍ତା ଆଣି
ସହର ଏ ନୁହେ ମୁରଲୀପାଣି
ଅଳପ କଟାକ୍ଷ ଖେଳାଅ ଖରେ
ତଳପଚୋଳା ଦାସୀଟା ଉପରେ । ୩ ।

କାନ୍ଦ କାନ୍ଦ ବୃନ୍ଦାବଣ ହୋଇଲ ମଉନ ଯେ
ଏକାଳେ କ୍ରୀଡ଼ାରେ ଥିବା ବ୍ରୀଡ଼ାବଣ ଜନ ଯେ
କୃଷ୍ଣଙ୍କୁ ତହିଁ ନ ଦେଖି ନୟନେ
ଖୋଜଲେ ବଜଲେ ଯମୁନାବନେ
ସଖୀକ କେ ଗୃହିଁ ଭାଷିଲ ଭାଷ
ବୋଲେ ବଶ୍ୱମ୍ଭର ରଜ-ସୁରେଶ । ୪ ।

ଗୋପୀ—

(ଦେଖ ବାଳା ଜନମ ହୋଇଲା—ପ୍ରଭୃ)

ପଚ୍ଛର ଗୋ ପଚ୍ଛର ସୁକେଶୀ । ପଦ ।

ମଲ୍ଲୀ ମାଧବୀ ମାଳତୀ ଫୁଟି ମନ ମୋହୁଛନ୍ତି
ଫୁଲରସିଆ ସେ ଶ୍ୟାମ ଆସିଥିବେ ଏହୁ ଆଶା । ୧ ।

ଯୂଥିକା ଗୋ କୁରୁବକ ମଣୁଛନ୍ତି ଆମ୍ଭ ଶୋକ
ଭଣ୍ଡିବେକ ସେ ମୋହନ ମଣ୍ଡିଥିଲେ ତାଙ୍କ ରସା । ୨ ।

ଆମ୍ବ କଦମ୍ବ ମନ୍ଦାର କରିବେକ ପରିହାର
ଦେଖୁଛନ୍ତି ନେହ କଷା ନଥାଇ ବୁଲିବା ଦଶା । ୩ ।

ଯମୁନାକୂଳ ବକୁଳ କହିବ ସକଳ ଛଳ
ନଷ୍ଟସଙ୍ଗୀଏ ମୋହିବ କେହି ଆମ୍ଭ ଲୋକହସା । ୪ ।

ମୃଗିଏ ଦେଖୁ ଏକାଳେ କହିଲେ ତାଙ୍କୁ ବିକଳେ
ରାଜେନ୍ଦ୍ର ଦେବ ଶ୍ରୀହରି କଥାରେ ଦେଲେ ମନୀଷା । ୫ ।

ଗୋପୀ—

(ପାଦପଦ୍ମ ମୋହୁଛି ମନ—ପ୍ରଭୃ)

ଆଗୋ କୁରଙ୍ଗି
ଦେଖିଲୁକି ମୋହନ ଭଙ୍ଗୀ ? । ପଦ ।

ଡାକଆଣି କଣୀଥରେ ଦେଇ ସେ ମନମଥରେ
ତେଜି ଏ ବନପଥରେ କାହିଁ ଗଲେ କହ ଥରେ । ୧ ।

ସଙ୍ଗେ ଯେନ ଏକ ବାଳା　　ରଙ୍ଗେ ରଚ ଫୁଲତୋଳା
ଅଙ୍ଗେ ତାର ମଣ୍ଡି ମାଳା　　କଲେ କ ଗୋ ଏ ଅଳ୍ପିଳା । ୨ ।

ସ୍ଵହିଁ ଚତୁରରତନ　　ରହାରେ କେତେ ଯତନ
ଆହା ପାଦପଦ୍ମ ଚହ୍ନ　　କାହାର ନ ମୋହେ ମନ ? । ୩ ।

ସହ୍ନିକ ସେ ପୀତବାସ　　କହ କେତେ ରସ ଭାଷ
ବହ୍ନଥିବେ ଫୁଲବେଶ　　ରହହୁ ସେ ଯେନ ବାସ । ୪ ।

ସକଳେ ବକଳ ହୋଇ　　ଯମୁନା କୂଳେ ସେ ଯାଇ
ହେଲେ କୁହାକୁହ ତହିଁ　　ରଜେନ୍ଦ୍ର କୃଷ୍ଣ ଧାଇ । ୫ ।

ଗୋପୀ—

(ଆଗୋ ଅଭିନ୍ନା କୁସୁଅନା କଶୋରୀ—ପ୍ରଭୃ)

ଆଗୋ କେଳୀକଳାକୁଶଳା ଛଇଲ
ଦେଖ ସାକ୍ଷାତ ଶ୍ୟାମ ସମ ହୋଇଲ । ପଦ ।

ସୁକେଶି ଅନା ଅନା　　ସେ କେଶୀ-ପ୍ରାଣଯେନା
କ୍ଷୀରପାନେ ପୋତନାକୁ ଏ ମାଇଲ । ୧ ।

ସକଳ ଗୋପବାସୀ　　ପଶୁଁ ଶରଣ ଆସି
ନଖଶିଖେ ଗୋବର୍ଦ୍ଧନକୁ ଧଇଲ । ୨ ।

କାଳନ୍ଦୀ ଜଳେ ପଶି　　କାଳୀୟୁ ବଳ ନାଶି
ବାଳୀ, ଢ଼ଳ ବଂଶୀରେ ଗୀତ ଗାଇଲ । ୩ ।

ହରି ନେଇ ବସନ　　କରି କେତେ ଯତନ
ପୀନ ଉପରେ କ ରଙ୍ଗରେ ଥୋଇଲ । ୪ ।

ରଜଇନ୍ଦ୍ର ଦେବ　　କୃଷ୍ଣ ପଦପଲ୍ଲବ
ଅନବରତେ ମନ ଦେଇ ଧାଇଲ । ୫ ।

ରାଧାଙ୍କ—

(ପଥେ ଶବର୍ଷଏ ଗୃହିଁ—ପ୍ରଭ)

ଘେନ ହେ ଏ ନବରସ
ହେ ନରକେଶରୀ-ସ୍ୱାମୀ । ପଦ ।

ଅର୍ଯ୍ୟମାଜେମାର କୂଳେ ଗୋପୀଏ ପ୍ରାଣ ଆକୁଳେ
ଶ୍ୟାମଙ୍କୁ ନଦେଖି ନେଧେ କାମଶରେ ଗଲେ ମରି । ୧ ।

ସମ୍ମ ଝାମ ବନ୍ଧିବାରେ ସେହି ଭାବ କହିବାରେ
ରହିଲ ନାହିଁ ଆପୁତ୍ର ବହି ନେତ୍ରୁ ନୀରଧାରି । ୨ ।

କେବଳ ବଢ଼ିଲା ଶୋକ ଚୌବକ ହେଲା ଅଧିକ
ନରୁଚଲା ସରୁବାସ ଅରୁଚ ହୋଇଲା ହାରି । ୩ ।

ଯାଇ ପୁଣି ଚେତା ଭଲେ ଯାଇ ସେ ବନେ ଖୋଜିଲେ
ପଡ଼ନ୍ତୁ ତହିଁ ଦେଖିଲେ ତଡ଼ିତାଙ୍ଗୀ-ମଥାଝରି । ୪ ।

ଶୁଣିଲେ ତାହାଙ୍କ ବାଣୀ ନାଶିବାକୁ ପାପଶ୍ରେଣୀ
କରେ ରାଜଇନ୍ଦ୍ର, ଦେବ ଶ୍ରୀହରି ପଦ ଆଶରି । ୫ ।

ଗୋପୀମାନେ—

(ସଖି ରେ ମୁଁ କ ହୁଡ଼ିଲ—ପ୍ରଭ)

ଧନ ରେ କାହିଁକି ଏହା
ବନରେ ପଡ଼ିଛ ଏକା ମନରେ ନାହିଁ ଉତ୍ସାହା । ପଦ ।

ଅମୃତ ନୋହୁ ଝଣାବାଣି ନୟନୁ ବୁହାଉ ପାଣି
କଥା ତ ନକହୁ ପଦେ ବ୍ୟଥା କ ଲଭିଲୁ ଆହା । ୧ ।

ପ୍ରହରେ ହେଲା ରଜନୀ ବିହାରେ ଆସିଲୁ ଯେନ
କପଟିଆ କୁଳବଂଶ-ଲମ୍ପଟିଆ ମାଳବାହା । ୨ ।

ମୁଞ୍ଜ ଆନ୍ତର ପୀରତି ଲୁଚି ଯେ କଲୁ ସୁରତି
ହେଲୁ କି ଉଚିତ ସତେ ରେ ଲାବଣ୍ୟ ସୁନାଦେହା । ୩ ।

ଉଠ ହେଲା ଯିବା ଚାଲ ଶଠଙ୍କୁ ଖୋଜିବା ହାଲ
କହେବ ବିକଳ ହେଲେ ବିହି ଲେଖିଅଛି ଯାହା । ୪ ।

ଏ ବଚନେ ବୃନ୍ଦାବଣୀ କାନ୍ଦି ଭାଷିଲେ ଭରଣୀ
ରାଜଇନ୍ଦ୍ର ବୋଲେ ଦୁଃଖ ପାଇଲେ ରହେ କି ଚାହା ? । ୫ ।

ବୃନ୍ଦା—
(ଆରେ କିଶୋର ବରଜିଲୁ କପାଁ ଶ୍ରୀହରି—ପ୍ରଭୃତି)

ଆଗୋ ସୁଭଙ୍ଗି
ଦେଖିଲୁକି ମୋହନ ଭଙ୍ଗୀ ?
ଆସି ଘୋର ବନପଥେ ଜାଣି ସୁଖ ଦେଲେ ଭଙ୍ଗି । ପଦ ।

ମୋତେ କି କଥା ଜଣା ସତେ କି ପୀୟୂଷ ଫେଣା
ଚାଖି ମୁଁ ହୋଇଲି ବାଇ ଆଖି ଅଞ୍ଜନପ୍ରାୟେ କଣା । ୧ ।

ବାସୁଛି ନାନା କୁସୁମ ଆସୁଛି ତୋଳି ମୁଁ ଧନ
ସହି ଲୁଚିଗଲେ କାହିଁ କହି ବନସ୍ଥ ବଚନ । ୨ ।

ଆଉ ନାହିଁ ମନ୍ତ୍ରାବଳ ଯାଉଛି ପ୍ରାଣ କେବଳ
କାହା ମନ ଥିଲା ଆହା ପାହା କଲେ ଶିଖିଚୂଳ । ୩ ।
ଲଲ ସିନା ହେବ ଆଶା ଚାଲ ଗୋ ଖଞ୍ଜନଦୃଶା
ଯୋଡ଼ ଯୋଡ଼ ହୋଇ ଏଥେ ଲୋଡ଼ିବା ଏ ବନ ରସା । ୪ ।

ବୋଲ ବୋଲ ଏହ୍ଵ ବାଣୀ ଖୋଜଲେ ବ୍ରଜ ତରୁଣୀ
ରାଜଇନ୍ଦ୍ର ଚନ୍ଦ୍ର ବୋଲେ ଆଜନମ୍ମୁ ଶ୍ୟାମଠାଣି । ୫ ।

ଗୋପୀମାନେ—

(ରାଜାବାନମ୍ମି ମୋ ଧନ—ପ୍ରଭ)

ଆସ ହେ ରାସମଣ୍ଡନ ହସ ହସ ହୋଇ ଥରେ । ପଦ ।

ଗୃହ୍ନିଁ ଆମ୍ଭର ଏ ଦାଉ କାହ୍ନିଁକ ଲୁଚଛ ଆଉ
ଏ ଘନ ବନପଥରେ । ୧ ।

ଗାନ ମୁରଲୀରେ ବହ୍ନ ଆନନ ଦିଅ ଦେଖାଇ
କୃପାକର ଅନା ଥରେ । ୨ ।

ସଶରଗଲୁ ଆସି ଧନ ମଶିବୁ ନଷ୍ଟେ ମଦନ
କଦନ୍ନୁ ଏ ଦେହ ଥରେ । ୩ ।

ଫୁରଣାରେ ଫୁଲବେଣେ କରୁଣା ଗୃହାଣି ରସେ
ବିଳସ ମୃଦୁ ମନ୍ଥରେ । ୪ ।

ରାଜଇନ୍ଦ୍ର ଦେବ ବୋଲେ ବିଭୁ କଟାକ୍ଷ ନଥିଲେ
କି ଅଛୁ ମନୋରଥରେ ? । ୫ ।

ଗାହାକ—

(ଜାଣିଲ ଅତ ବିଷମ ନେହପୀରତ—ପ୍ରଭ)

ହେ ନରେଶ,
ଦେଖ ଏଥୁଅନ୍ତେ ରସ । ପଦ ।

ସକଳ ଛଇଲି ବନଯାକ ବୁଲି
ମନ୍ନୁ ଡେଜ ଶ୍ୟାମ ଆଶ

ଯମୁନାର ତୀରେ ବରସମତଳରେ
ବସିଲେ ହୋଇ ପ୍ରବେଶ । ୧ ।

ଏକାଳେ ଶ୍ରୀଧର କଲେ ଜରଜର
ଦର୍ପୀରେ ବ୍ରଜ ମାନସ
ଆହା କି ସୁନ୍ଦର ହୋଇଲେ ବାହାର
ବହି ନାନା ଫୁଲବେଶ । ୨ ।

ଶୁଭୁନାହିଁ ପଦ ନୂପୁର ଶବଦ
ମୁଖେ ଧରି ମନ୍ଦ ହାସ
ଶିଶୁ ଅଳିମାଳା ମନୋହର ଖେଳା
କଟାକ୍ଷ ଲୀଳା ବିଳାସ । ୩ ।

ଗୃହିଁଦେଇ ଦୂରୁ ସକଳ ରମଣୀରୁ
ପୋଛିଲେ ମୁଖ ସାରସ
ଶ୍ୟାମ ମିଳି ଆଗେ ଭାଷିଲେ ସରାଗେ
ବୋଲେ ରାଜବଲଭସ । ୪ ।

ଶ୍ରୀକୃଷ୍ଣ—
(ନମାର ଆଉ ଶ୍ୟାମ ଗୁଲକୁ—ପ୍ରଭ)

କାହିଁକି ଏଡ଼େ ଗୁମାନ ସହି
ନାହିଁ ନଥିବାର ମୁକୁର ମୁହିଁ । ପଦ ।

ଉଚ୍ଚ ପରବତ ପରବ ଦଳିତ
କୁଚପରେ ମୁଖଚନ୍ଦ୍ରକୁ ବହି
ଚରୁଛ ଯେ ବସି କରଜରେ ରସି
ନିରୁପମ କଳାବିଳାସ ସହି । ୧ ।

ନଟନକୁଶଳା ଖେଳଲେ ଲୀଳା
ଲଟ ପାଶୋରନ୍ତି ଭ୍ରୂବଲ୍ଲୀ ଅନ୍ଧ
ଚତୁରଏ ଖଣ୍ଡ କସ ଗୋ ଏ ଗଣ୍ଡ
ବତୁର ଗଲନ ଲୋତକ ବନ୍ଧ । ୨ ।

ସରସ ମଧୁର ପଣା ଊଣାକର
ହରଷ ବଚନ ପଦେ ନ କନ୍ଧ
ଛୁନନ୍ଧୁଅ ମୂନ- ମୋହନା କଢେନ
ଖୂନକଲ ଲୋକ ପରାଏ ରନ୍ଧ । ୩ ।

ନ ଧରଇ କେଶ ଅଙ୍ଗଭଙ୍ଗୀ ବେଶ
ଅଧର ଭଜନ୍ତି ବରଙ୍ଗ ଗନ୍ଧ
ରତି କେବଳ ମାତ୍ର ନାସାନଳ
ତାନ୍ତି ଧୂର୍ତ୍ତ ଦେଲନ ଦନ୍ଦ । ୪ ।

ଶୁଣି ଶ୍ୟାମ ବାଣୀ ସକଳ ତରୁଣୀ
ହସିଲେ ହରଷ ଇଙ୍ଗିତ ବନ୍ଧ
ରାଜଇନ୍ଦ୍ର ଦେବ ସେ ବନ୍ଧୁଙ୍କ ଭାବ
ହୃଦେ ନତ ରଖିଲେ ଲନ୍ଧ । ୫ ।

ଗୋପୀମାନେ—

(ପାବଣ୍ଡ ଦେଖା—ପ୍ରତି)

ଆହେ ନବକିଶୋର ଶ୍ୟାମ
ମୁରଲୀଧର ନାଗର ଜାଡ ମନୋହର
ନୀଳକଞ୍ଜନୟନ ହେ ଭାଳଥିଲ କି ମନେ
ଆଳୀଙ୍କି ସୁମ ଶର ପାଳରେ ଦେବ ବୋଲି । ପଦ ।

ଜାଣିଥିଲେ ଏହା ହେବ ଧନ
ଆଣି ପାରନ୍ତା କେହ୍ନ ଏ ବଂଶୀସ୍ୱନ ?
ବାଣୀ ପୀୟୂଷ ମୃଦୁ ସୃଣି ଚତୁରପଣ
ଆଲୀମୋହନ-ମାଳ- ଠାଣି କଷନ୍ତୁ ତେବେ । ୧ ।

ଆସି ମୁଖ ଦେଖାଅ ଏବେ
ଭସି ଗଲୁନ ଦାସୀଙ୍କ ମାନେ ଶୋକାର୍ଣ୍ଣବେ
ଜାଗର କର ନଶି- ଭାଗରେ ବୁଲି ବୁଲି
ଆଗରେ ମିଳ ଅନୁ- ରାଗରେ ମନ ଦେନ । ୨ ।

ନାହିଁ ଲୋଡ଼ା ତୁମ୍ଭ ପୀରତ
କାହିଁକି ଆଉ ରହିଁ ବସିଛ ଦୁଃଖରତ
ଯାଉଛୁ ପୁରକୁ ଏ ଦାଉ ନ ସହୁ ଲବେ ଥାଉ
ଏ କଟାକ୍ଷ କଠାଉ ତଳରେ ନମି । ୩ ।

ଶିଖଣ୍ଡଚୂଳ ସଖି ଗିରେ
ବକଳ ହୋଇ ଭିଡ଼ିଲେ ମଦନ ଆତୁରେ
ରଜନ ସୁରବର ତାଜ କର ସେ ବ୍ରଜ-
ରାଜତନୁଜ ପଦ ଆଜନମୁ ସେବେ । ୪ ।

ଶ୍ରୀକୃଷ୍ଣ—

(ପ୍ରେମଚନ୍ଦ୍ରାମଣୀକ—ପ୍ରତି)

ଘେନ ଘେନ ବନସ୍ପ କଟିସରୁଆ । ପଦ ।

କାହିଁକି ଏଡ଼େ ରୋଷ
ନାହିଁ ତ କଛୁ ଦୋଷ
ଧର ତୁମ୍ଭ କର ମାଗୁଛୁ ନ କର
ମୋତେ ପଞ୍ଚଶର ଜରୁଆ । ୧ ।

ଅପରାଧ ବଗୃର
କଲ ଏବେ ପଗୃର
ଭୂରୁଗୃପେ ସନ୍ଧ    ନେହଶରେ ବନ୍ଧ
ଦଣ୍ଡଦଅ ନାହିଁ ପରୁଆ ରେ । ୨ ।

ଆହୁର ସରସରେ
ବାନ୍ଧ ବାହୁପାଶରେ
ମୋ ଉରେ ଜମାଇଁ    ରଖ ରଖି ଦୁଇ
କୁଚଗିର ଅତି ଗରୁଆ ରେ । ୩ ।

ସାଜ ଭୁମ୍ବର କେଶ
କରିବ ବୋଲ ବେଶ
ଦେଖ ଦେଖ ବାଛୁ    ବନରୁ ଆଣିଛୁ
କନ୍ଦ କରମ୍ବାର ମହୁଆ ରେ । ୪ ।

ଶୁଣି ଏ ଗୂଢ଼ ଭାଷା
ହସିଦେଲେ ସୁଦୂଶା
ଭାଷିଲେ କେଶବ    ନୃପତି-ବାସବ
ଚନ୍ଦ୍ର ହୋଇ ଭବ-ଉଡ଼ୁଆ ରେ । ୫ ।

ଶ୍ରୀକୃଷ୍ଣ—

(କଳାବତୀ, କାମ ମାର ବଦାରୁଛି ଗୁଡି—ପ୍ରତି)

ଘନକେଶୀ    ଧନ ଯେବେ
ହେଲୁ ମନ ମିଶାମିଶିରେ । ପଦ ।

ପ୍ରାଣପର ସବୁ ପ୍ରିୟସଖୀ
ଆଣ କେ ହେଲେ କୁଞ୍ଜକୁ ଯାଇ
ରଖାଇଛୁ ନାନା ଯନ୍ତ୍ର ବାଛୁ ଆଜ
ନଖାଜ ମୋ ଧୃତ ହସିହସି । ୧ ।

ପୂହାଇବା ସୁଖେ ଚନ୍ଦ୍ରରାତ
ନୂଆବୟସୀ ଏ ବୃନ୍ଦାବଣ
ଚଯୁଡ଼ ଜାଣଇଁ ମଦନ ସୁରସ
ଝିପୁଥାଉ ପଖାଉଜ ରସି ରେ । ୨ ।

ସଙ୍ଗୀତରଙ୍ଗୀ ସାରଙ୍ଗୀ ଧରୁ
ଇଙ୍ଗିତ ଭଙ୍ଗୀ ରଙ୍ଗିଲଗୁରୁ
ମଙ୍ଗିଯା ଅଭନ୍ନା ଖଞ୍ଜଣିକ ସୁନା-
ଅଙ୍ଗି ଯା ଅଲପ ସ୍ତନ ଠେସି ରେ । ୩ ।

ଲଜ୍ଜା କାହିଁକ ଟର କୁଞ୍ଜଲତା
ବଜାଇ ହଜାଇ ଦିଅ ଚେତା
ସଜାଇ ଏ ବୀଣା ଦେଇଛୁ ତୋ କରେ
ମଜ୍ଜାଇବ ସେହି ସ୍ୱରେ ବଂଶୀ ରେ । ୪ ।

ଶୁଣି ଆଣି ଯନ୍ତ୍ରେ ବରାଜଲେ
ପୁଣି ପଦେ ପଦେ ସେ ଭଷିଲେ
ରାସ ବରଚଲେ ରାଜଇନ୍ଦ୍ର ବୋଲେ
ହୋଇ ଶ୍ୟାମ ସେବା ଅଭିଳାଷୀ ରେ ।୫।

ଗୋପୀମାନେ—

( ଭଜ ରେ ମନ ଗୋପାଳଂ—ପ୍ରଭୃ )

ମୁରଲୀପାଣି ହେ    ଏ ଭାବ ନପାରେ ମୁଁ ଜାଣି ହେ
କଞ୍ଜ ଲଳିତତର    ରଞ୍ଜନ ମୁଖ ମାଳ
ଅଞ୍ଜନ ଅନୁଖେଳ    ଖଞ୍ଜନ-ନୟନ ହେ । ପଦ ।

କାହ୍ନୁଙ୍କ ଏ ଚୂଡ଼    ଗାଢ଼େ ଦେଲେ ମୁଁ ଭିଡ଼
ଆଉ ମୋ ମନର ନଯାଉ ଲଭ ଏବେ
ଆଉ ନରଚ ଚୂମ୍ବ କାଉଳ ହୋଇ ଏଡ଼େ । ୧ ।

ଶ୍ରୀକୃଷ୍ଣ—

ବନ୍ଧୁ ଆରେ ବାରେ    ଛନ୍ଦ ମୋ କହି ତୋ ପାରେ
ଚଞ୍ଚଳନୟନୀଏ    ପଞ୍ଚବଶିଖ ଦରୁ
ବଞ୍ଚନ ଘନ ସଞ୍ଚୟୁ ରୁଚ କେଶି । ପଦ ।

କହ ମୋ ଋଣ ଅଛୁ    ତତେ ରେ କି ଲଗୁଛି ?
ମାନସକୁ ସତେ ପାନ କଲେ ଅଧର
କାନରେ କହୁ କପ ଆନ ତୁ ଦେଇ ଧୀରେ । ୨ ।

ଗୋପୀ—

ମଲ ମଲ ମୁଁ ହାତ    ଶିଥିଳ କର ଘୁତ
ଅଙ୍ଗରୁ ମୋର ଏହ ଅଙ୍ଗକୁଙ୍କୁମ ବୋଳ
ସଙ୍ଗୀ ହୋଇବ ଏ ଶ୍ରୀଅଙ୍ଗକୁ ଘେନ ଘେନ । ୩ ।

ଶ୍ରୀକୃଷ୍ଣ—

ନବରସିକା ଜାଣ    ତୁ ମୋର ପଞ୍ଚପ୍ରାଣ
ରୂଳ କଠିକ ଧନ ନାଳକ କଳ କୁଚ
ଢାଳଦେ ମୋର ଉରେ ଝଳଚ ଝଳ ତନୁ । ୪ ।

ଏହି ସୁରସ ଶେଷେ    ଶ୍ୟାମ ଭାଷିଲେ ତୋଷେ
ରାଜନ ସୁରବର ତାଜ କଲେ ବରଜ-
ରାଜତନୁଜ ପଦ ଆଜନମୁ ନତ୍ୱଚେ । ୫ ।

ଶ୍ରୀକୃଷ୍ଣ—

(ଘନଶ୍ୟାମଙ୍କୁ ଜୁହାର—ପ୍ରତି)

ନବନାଗରୀଭୂଷାଏ ଘେନ ଘେନ ମୋ ବନତି ବାରେ
ନଦେଲ କି ସୁଖଚିତ୍ତ ମଦେ ମାତିବାରେ । ପଦ ।

କାଳନ୍ଦୀ ତଟ ବିପିନ    ଭାଳବାରେ ହେଲି ଧନ୍ୟ
ନତ ଏହିପରି କର ପ୍ରୀତି ଶରଧାରେ । ୧ ।

ଲଲି ହେଲି ହଗମାନେ    ଗୁଲ ଗୋ ପିବା ବହନେ
ଶ୍ରମରୁ ପୂରିଲି ତନୁ ଘର୍ମ ନୀରଧାରେ । ୨ ।

ରାଜୀବ ବାସ ମରୁତ    ବାଜିବାକୁ ବଳେ ଚତ୍ତ
ରାଜ କର ଖେଳିବା ଗୋ ଆଜି ଯମୁନାରେ । ୩ ।

ଭାରି ନତମ୍ବିଏ ମିଳ    ସାରିଦେବା ଜଳକେଳି
କଦନ ବହିବା ପାପ ମଦନ ଗମାରେ । ୪ ।

ଶ୍ୟାମବାଣୀ ଶୁଣି ଗଲେ    ଜଳେ ବିହରି ଭାସିଲେ
ରାଜତ ହେଲି ଏ ଗୀତ ରାଜ-ବଡ଼ୋଜାରେ । ୫ ।

ଗୋପୀ—

( ରସରଙ୍ଗୀଟି ମୋ ଜୀବନ—ପ୍ରଭୁ )

ରଙ୍ଗମନା ଅନା ଚଞ୍ଚଳ କେଳିକ
ନୋଳ ଆଣ ଗୋ ଦେବା ବନମାଳୀକ । ପଦ ।

ତୋତେ ଅଛି ମୋ ରାଣ  ନକର ହଇରାଣ
କଟି ତ ସରୁ ସ୍ୱନ ଘଟିତ ହଇରାଣ
ଭ୍ରୁ ନୂଆଁ ଛଇଳଟି ଯେନ ନେବୁ ଚରଣ
ଏ ସୁଆଗକୁ ମୁହିଁ ଭଳ କି ? ।୧।

ଦେଖ ଗୋ ଦେଖ ସହି  ଏ ମୋତେ ରଖୁ ନାହିଁ
ବୁଡ଼ାଇବାକୁ ଜଳେ  ଗୋଡ଼ାଇଅଛି ସେହି
କେତେ ରସଭଙ୍ଗୀ ଏତେ ଶିଖିଲ୍ କାହିଁ ?
ଆଉଁସୁଛି ମୋ କାମସ୍ଥଳୀକ ।୨।

ମାଗୁଛି ଧରି କର  ଲାଗୁଛି ବଡ଼ ଡ଼ର
ପହଁର ଆସୁନାହିଁ ରହ ରସିକାବର
ଲଙ୍ଘା ହୋଇ ଗଲାଟି ସଙ୍ଗାତ ପର ମୋର
ଜଙ୍ଘା ଜଘନ ତଳେ ଗଲା କି ? ।୩।

ଜଳକେଳି ଏପରି  କଲବାଣୀ ଏ ପାରି
କୂଳରେ ଉଭା ହୋଇ ଦେଖି ତାଙ୍କ ମାଧୁରୀ
ମେଲାଣି ମାଗିବାକୁ ଭାଷିଲେ ବଂଶୀଧାରୀ
ବନ୍ଦେ ବ୍ରଜେନ୍ଦ୍ର ଶ୍ୟାମ ଝଲକ ।୪।

ଶ୍ରୀକୃଷ୍ଣ—

(ଚନ୍ଦ୍ରର ଶୃଙ୍ଖଳାକ ଗୃହେଁ ଚମକ—ପ୍ରଭୃତି)

ସଜନ ! ମୁଁ ଯାଉଛି ରେ
ଥାଉ ଚତୁର ଏ ଅନୁକମ୍ପା ରେ । ପଦ ।

ଥିଲପରି ତୋର ପାଶରେ ଯେମନଥିବୁ ନଶା ବାସରେ
ଗାନକୁଶଳା ରେ ଆଉ ତୁ ନମାରେ
ଜ୍ଞାନହରା କାମ ମଲ୍ଲୀଗୁମ୍ଫା ରେ । ୧ ।

ଭିନ୍ନ ହୋଇ ପରାଣସହ ଦିନ କାଳ ବଞ୍ଚିବ କେହ
ପୀନପୟୋଧର କ୍ଷୀଣ ଦେହ କର
ମୀନକେତୁ ମୋର ଧୃତଝମ୍ପା ରେ । ୨ ।

ବରବୃତି ଏପରି ସହ ପରିବାର ନଥିବେ କେହ
କଞ୍ଜରମ୍ୟବାସୀ ପଞ୍ଜରକୁ ଆସି
ରଞ୍ଜନ ଭ୍ରମର ଦରକମ୍ପା ରେ । ୩ ।

ଅନୁପମ କୁନ୍ଦ ସୁହାସି ଧନୁ ଗୁରୁ ଭ୍ରୂ ବିଳାସୀ
ଅନୁକ୍ଷଣେ ତୋର ହେବ କ ପାଶୋର
ଧନଟି ମନୁ ତୋ ଉନ୍ନତମ୍ପା ରେ । ୪ ।

ଆଜି କେଳି କୁତୁକ ଭାବ ରଜବାଣି କେବେ ନୋହିବ
ଆଣିବ ବନ୍ଧୁଆ ସାଜଦେବ ନୂଆ
ମାଜ ମଣିମଣ୍ଡା ବେଣୀଝୁମ୍ପା ରେ । ୫ ।

ଶୁଣି ଭାଷିଲେ ସଖୀଏ ପୁଣି ଜଣେ ବନପ୍ରେ
ଭଣିଲେ ରାଜେନ୍ଦ୍ର ସୁରସିକ ଚନ୍ଦ୍ର
ଚୁମ୍ବି ଶ୍ୟାମ କରାଙ୍ଗୁଳି ଚମ୍ପା ରେ । ୬ ।

ଗୋପୀ— .

(ଯାଉଛ ରେ ରସବନ୍ତ ନନ୍ଦ ପଡ଼ୁଥିବ ମନେ—ପ୍ରଭ)

ଯାଉଛ ହେ ଖିଆଲିଆ ଥାଉ କୃପା କଞ୍ଚିତରେ । ପଦ ।

ନୟନ ସମ୍ପଦ ମୋର ଶୟନ କାଳେ ଭ୍ରମର
ପୟରେ ନବେଶି କର ରହିଛ ମୁଁ ନିରନ୍ତର ।୧।

ପାଶୁ ତ ଅଳପ ଗଲେ ଶାଶୁ ତ ଭୁଲିଲୁ ହେଲେ
ବାସୁଛୁ ତୋ ତନୁ ଭଲେ ଭାଷୁଛୁ କେତେ ଗୁଚର ।୨।

ବାହାର ଯିବାକୁ ମନ ଯାହା ଲଗୁ ଛୁ ହେ ଧନ
ଆହା ମୋ ରଙ୍କରତନ କାହାର କ ଆୟତ୍ତ ରେ ।୩।

କହି ଏ ମୃଦୁ ଭାଷକୁ ସହିଏ ଗଲେ ବାସକୁ
ରହିଲେ ରାସ ରସକୁ ରାଜେନ୍ଦ୍ରଦେବ ଗୀତରେ ।୪।




ବ୍ରହ୍ମପୁର ଓଡ଼ିଶା ପ୍ରିଣ୍ଟିଙ୍ଗ୍ ଓ୍ୱାର୍କସ୍‌ରେ ଶ୍ରୀ ହାଡ଼ୁ ସାହୁଗୁରୁଙ୍କ ଦ୍ୱାରା ମୁଦ୍ରିତ ।
୧୯୪୫